# ଶିକ୍ଷାନବିଶ୍ ପ୍ରେମିକ

( ପ୍ରହସନ )



ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର, ବି.ଏ.

# ଶିକ୍ଷାନବିସ୍ ପ୍ରେମିକ

( ପ୍ରହସନ )



ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର, ବି.ଏ.,

ପ୍ରଣୀତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

କଟକ, ଚନ୍ଦ୍ରୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।

Printed by H. K. Das,
Chandrodaya Press,
Cuttack.
1927

ମୂଲ୍ୟ ୦ ° ୵ ଦୁଇଅଣା ।

| ପାତ୍ରଗଣ । | ପାତ୍ରୀଗଣ । |
| --- | --- |
| ସୁଧାନାଥ ବାବୁ—ଜନୈକ ଡେପୁଟି | ମାଳତୀ—ସୁଧାନାଥ ବାବୁଙ୍କ ୧୦ମ ବର୍ଷୀୟା ଜ୍ୟେଷ୍ଠା କନ୍ୟା |
| କରୁଣ ବାବୁ— „ ଓକିଲ | ମାଧବୀ—ସୁଧାନାଥ ବାବୁଙ୍କ ଅଷ୍ଟମ ବର୍ଷୀୟା କନିଷ୍ଠା କନ୍ୟା |
| ଗୁରୁଚରଣ--ସୁଧାନାଥ ବାବୁଙ୍କ ଘରମାଷ୍ଟର | |
| ମଦନ—ସୁଧାନାଥ ବାବୁଙ୍କ ଶିଶୁପୁତ୍ର | |

# ଭୂମିକା ।

ଏହି ପ୍ରହସନର ଆଖ୍ୟାୟିକା ମୋର ଗୋଟିଏ ଗଳ୍ପରୁ ଗୃହୀତ । ଶ୍ରୀଶ୍ରୀଗୋପୀନାଥ ସଙ୍ଗୀତ ସମାଜର ଅଭିନୟ ନିମନ୍ତେ ନାଟ୍ୟାକାରରେ ଏହା ରଚିତ ହୋଇଥିଲା । ଏହାର ଅଭିନୟ ଦେଖି ଅନେକେ ସନ୍ତୁଷ୍ଟ ହୋଇ ପୁସ୍ତିକାକାରରେ ପ୍ରକାଶ କରିବା ପାଇଁ ମୋତେ ଅନୁରୋଧ କରିଥିବାରୁ ବର୍ତ୍ତମାନ ପ୍ରକାଶ କରିବାକୁ ସାହସୀ ହେଲି । ପାଠକ ଓ ନାଟ୍ୟକାରବୃନ୍ଦ ସାଦରେ ଗ୍ରହଣ କଲେ କୃତାର୍ଥ ହେବି । ଇତି ।

ଲେଖକ ।

# ଶିକ୍ଷାନବିଶ ପ୍ରେମିକ

## ( ପ୍ରହସନ )

### ପ୍ରଥମ ଦୃଶ୍ୟ ।

[ ସୁଧାନିଧି ବାବୁଙ୍କ ଦାଣ୍ଡଘର ]

( ମାଷ୍ଟର ଗୁରୁଚରଣ, ମାଳତୀ, ମାଧବୀ, ମାଧ ଓ ମଦନ । )

( ପିଲାମାନେ ଯେ ଯାହାର ପାଠ ପଢ଼ୁଛନ୍ତି ଓ ମାଷ୍ଟର ଥରେ ଜଣକୁ ଓ ଆଉଥରେ ଆଉ ଜଣକୁ ପାଠ କହି ଦେଉଛନ୍ତି । ମାଧକୁ ଜ୍ୟାମିତି ବୁଝାଉଛନ୍ତି )

ମାଧବୀ—( ହଠାତ୍ ) ମାଷ୍ଟରେ, ମାଷ୍ଟରେ, ଅପା ମୋତେ ଅଙ୍କ ଚମୁଟି ପକାଇଲା ।

ମାଷ୍ଟର—କେତେବେଳେ ? ଆଚ୍ଛା, ବୁଝିବା । ( ପୁଣି ପଢ଼ିଲେ )

ମାଧବୀ—ମାଷ୍ଟରେ, ମଦନ ମୋତେ ବିଧାଏ ମାରି ପଳାଇଲା ।

ମାଷ୍ଟର—ଅଚ୍ଛା, ସେ ମାଡ଼ ଖାଇବ । ( ପୁଣି ପଢ଼ିଲେ )

ମାଧବୀ—ମାଷ୍ଟରେ, ମାଧଭାଇ ମୋତେ ଖତେଇ ହେଉଥିଲା ।

ମାଷ୍ଟର—ଓଃ, ବଡ଼ ବିରକ୍ତ କଲା ଏଗୁଡ଼ା । ମାଧବ, ତୋହର କଣ ସବୁ ଫେରାଦ ସମସ୍ତଙ୍କ ନା'ରେ ?

ମଦନ—ହଁ, ମାଷ୍ଟରେ, ମାଧଭାଇ ସାନ ଅପାଙ୍କୁ ଚାହିଁ ଇମିତି କରୁଥିଲା । ( ଚୁମ୍ବନର ମୁଖଭଙ୍ଗୀ )

ମାଷ୍ଟର—କମିତି ?

ମଦନ—( ପୁଣି ମୁଖରେ ଚୁମ୍ବନର ଭଙ୍ଗୀ କରି ଦେଖାଇଲା )

ମାଧବୀ—ଅହୁରି ହାତକୁ ଛଡରେ ମାରୁଥିଲା ।

ମାଷ୍ଟର—କି, ମାଧ, ଇମିତି କରୁଥିଲୁ କାହିଁକି ?

ମାଧ—ନା, Sir, ମୋ ଦାନ୍ତରେ ଗୁଅ ଲାଗିଥିଲା ଯେ ମୁଁ ଇମିତ କରୁଥିଲି । ( ଭଙ୍ଗୀ କରିବା )

ମାଷ୍ଟର—ଅଚ୍ଛା, ସେ ଆଉ କରିବ ନାହିଁ । ଯା, ପଢ଼ ।

( ପୁଣି ପଢ଼ିଲେ )

( ସୁଧାନାଥ ବାବୁଙ୍କର ପ୍ରବେଶ )

ସୁଧା—ମାଷ୍ଟରବାବୁ, ଆଜ ପଢ଼ାପଢ଼ି ସରି ନାହିଁକି ? ପିଲାଙ୍କୁ ଛୁଟି କରିଦିଅ ଏବେ ।

ମାଷ୍ଟର—ଆଜ୍ଞା ହଁ । ଯାଅ ସବୁ । ବହିପତ୍ର ବୁଦିଅରକର ରଖ ।

( ସମସ୍ତେ ବହିପତ୍ର ଗୋଠାଇ ଗଲେ )

ସୁଧା—ମାଷ୍ଟରବାବୁ, ମାଳତୀକୁ କିପରି ଦେଖୁଛ ?

ମାଷ୍ଟର—ମାଳତୀଟି ବଡ ଶାନ୍ତ, କିନ୍ତୁ ପଢ଼ାପଢ଼ିରେ ସେପରି ଭଲ ନୁହେଁ । ଟିକିଏ ମୋଟା ବୁଦ୍ଧିଆ ।

ସୁଧା—ହେଉ, ମାଇକିନିଆ ଝିଅ—ଆଉ କେତେଦିନ ପଢ଼ିବ, ଟିକିଏ ଲେଖିପଢ଼ି ଜାଣିଲେ ହେଲା । ଅଚ୍ଛା, ମାଧବ ?

ମାଷ୍ଟର—ମାଧବଟା ବଡ଼ ଦୁଷ୍ଟ । ଭାରି ଚପଳ ସ୍ୱଭାବ । ସବୁବେଳେ ସମସ୍ତଙ୍କ ସାଙ୍ଗରେ କଳିକଜିଆ—କେବଳ ଫେରାଦ ।

ସୁଧା—ତା ମା'ଙ୍କର ସେ ଚେହେରା । ସେଥିପାଇଁ ଟିକିଏ·········
ଆଉ ମଦନ ?

ମାଷ୍ଟର—ମଦନ ପିଲାଲୋକ । କିଛି ଜଣାଯାଇ ନାହିଁ । ବୋଧହୁଏ ପଢ଼ିବ ।

ସୁଧା—ଅଚ୍ଛା, କରୁଣାବାବୁଙ୍କ ପୁଅ ? ଏହି ଯେ ମାଧବ, ଏ ଟିକିଟି । କିପରି ?

ମାଷ୍ଟର—ମାଧବ ଅଳ୍ପଦିନ ହେଲା ଅସିଛି । ଠିକ୍ ବୁଝାଯାଇ ନାହିଁ । ତେବେ ମନ୍ଦ ନୁହେଁ ।

ସୁଧା—ସ୍ୱଭାବ ଚରିତ୍ର କପରି ଦେଖୁଛ ?

ମାଷ୍ଟର—କାହିଁ କିଛୁତ ସେପରି ଦେଖି ନାହିଁ ।

ସୁଧା—ନା, ନା, କଥା କ'ଣକି, ପିଲାଟିର ଟିକିଏ ଫେସନ୍ ଫାସନ୍ ଆଡ଼କୁ ମନ । ସେଥିପାଇଁ ପଚାରୁଥିଲି ।

ମାଷ୍ଟର—( ସହାସ୍ୟେ ) ଆଜିକାଲି ଦେଖୁନାହାନ୍ତି; ଇସ୍କୁଲିଆ ପିଲାଙ୍କର ସେଉଟା ଗୋଟାଏ habit ହୋଇଗଲାଣି । ଟିକିଏ ଧୋବଧବଳିଆ ଉପଚାକଣ ନ ହେଲେ ଏବେ ଛାତ୍ର ସମାଜରେ ଚଳୁନାହିଁ ।

ସୁଧା—ଇଏଂକିଲୁ ବେଳାଏ ପିନ୍ଧି ଯାନ୍ତି । ଠେ ଭିଷ୍ଟାଡ ଲଗେଇ ଟଙ୍କା ।

ମାଷ୍ଟର—ଏ ଯୁଗରେ ସେଉଟା ଦୂଷଣୀୟ ନୁହେଁ । ସେଉଟା ପରିଚ୍ଛନ୍ନତା ମଧ୍ୟରେ ଗଣ୍ୟ । ନୋହିଲେ ଲୋକେ indecent ugly bad ବୋଲି ପାଖରେ ବସାଇ ଦେବେ ନାହିଁ ।

ସୁଧା—ଯାହାହେଉ, ସ୍ୱଭାବ ଚରିତ୍ର ଯେବେ ଭଲ ହେବେ ମୋର କିଛି କହିବାର ନାହିଁ । ହେବେ କଣ କି Company ଦୋଷରେ ଅମ ପିଲାଏ କିଏତ ଖରାପ ହୋଇଯାଇ ପାରନ୍ତି ।

ମାଷ୍ଟର—ମୋ'ରଠ ଥିଲାଯ, ସେ ଭୟ ମାଧଠାରେ ନାହିଁ ।

ସୁଧା—ମାଧର ବାପା ମୋର ଖୁବ intimate friend, ସେ ସେଦିନ କହିଲେକି ତମଘରେ ମାଷ୍ଟର ଅଛି, ଆମ ମାଧ ଖଣ୍ଡିଏ ଘଣ୍ଟାଏ ତାଙ୍କ ଠେଇଁ ପଢ଼ୁ । ମୁଁ ଆଉ କିଛି ଆପତ୍ତି କରିପାରିଲି ନାହିଁ । ତେହୁଁକି ତମର ସେଥିରେ ଯେତେବେଳେ ମତ, ମୋର ସେଥିରେ objection କଣ ?

( ଜଣେ ଭୃତ୍ୟର ପ୍ରବେଶ )

ଭୃତ୍ୟ—ବାବୁ, ପୂଜ୍ ରି ଭାତ ଦେଲାଣି ।

ସୁଧା—ହଁ, ହଁ, ଵଡ ହେଲାଣି—ଅସ ମାଷ୍ଟର ବାବୁ ।

( ଉଭୟଙ୍କର ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ ।

( ମାଧବର ଏକାକୀ ପ୍ରବେଶ )

ମାଧ—ଏହି ବୟସରେ ଅନେକ ନଭେଲ, ନାଟକ, ପ୍ରେମକବିତା ପଢ଼ିଲି । ହଠାତ୍ ଗୋଟିଏ hero ହେବାର ଇଚ୍ଛା ତେଜ୍ ହୋଇ ଉଠିଲାଣି । ଖାଲି ପଢ଼ିଲେ କଣ ହେବ ? ଆପଣା ଅଙ୍ଗେ experience କଲେ ଯିନା ହେବ; ତେବେ ଯାଇ ଜଣାଯିବ love କମିତିକା ଜିନିଷ, ଆଉ ପ୍ରେମ କରିବାରେ କି ମିଠା ଅଛି । ସେପରି କିଛି ନଥିଲେ ବଡ଼ ବଡ଼ ପ୍ରେମିକମାନେ ପ୍ରେମପାଇଁ ସର୍ବସ୍ୱ ତ୍ୟାଗ କରନ୍ତି କି, ଜୀବନ ବିସର୍ଜନ ଦିଅନ୍ତି କି ? Love ପାଇଁ selfsacrifice, ଅହା, କି beautiful, କି Chivalrous ! ଏତେଦିନେ ଗୋଟିଏ ପାତ୍ର ମିଳିଛି । ଠିକ ideal. ଯେଉଁ ବାଳକା-ସ୍କୁଲକୁ ୪।୬ଦିନ ହେଲା ପଢ଼ିବାକୁ ଯାଉଛି, ସେଠି ଦର୍ଶନ ପାଇ ଅଛନ୍ତି । କିନ୍ତୁ ସେ ମାଳତୀଟା କିଛି ନୁହେଁ । ବୋକା—ଆଉ ମାଧବୀ—ଇସ୍—ଠିକ ପ୍ରେମ କରିବାର object । Love ଜିନିଷଟାତ ଯିମିତି ସିମିତି ନୁହେଁ ଯେ, ଖତଗଦାରେ ଫୋପାଡ଼ ଦେବାକୁ ହେବ ! ସେଥିପାଇଁ ଯୋଗ୍ୟ ପାତ୍ର ଯୋଗ୍ୟ କ୍ଷେତ୍ର ଦରକାର । ଓଃ, ମାଧବୀଟା କି ଭୟାନକ ସୁନ୍ଦରୀ ! କି ମାରାତ୍ମକ ସୁନ୍ଦରୀ, କି deadly beautiful ! ତାର ଚଞ୍ଚଳତା ଯେପରି ପ୍ରଜାପତି ପରି lovely, ତାର ହାସ ଭଙ୍ଗ ସେହିପରି ବୁଲ୍‌ବୁଲ୍ ପରି ମନୋହର । ତାର ଅନ୍ତର ଜ୍ୟାମିତିର straight line ପରି ସରଳ । Damned sweet girl ! ମୁଁ ଏହାର ଭିତରେ ତାକୁ ଟିକିଏ ଟିକିଏ ଇସାରା ଦେଖେଇଲିଣି । ବିଚାରୀ ବୁଝି ପାରୁନାହିଁ । ମୁଁ ତାକୁ kiss କରିବା ଦେଖେଇକି,

ସେ କନ୍ଧକୁ ଖଦେଇ ହେଉଛୁ । ଅଛା, ଅଛା, 'ସବୁର୍‌କା ଝାଡ଼ମେ ମେଓ୍ୟା ଫଲ୍‌ତା ହ୍ୟାଯୁ' । ପ୍ରେମସଙ୍ଗୀତ ଥରେ ଶର୍ଜାହେଲେ ଅସମ୍ଭାଳ ହେବ । ତେବେ ଅଳ୍ପେ ଅଗ୍ରସର ହେବାକୁ ହେବ । Slow and steady wins the race ଧୀର ପାଣି ପଥର କାଟେ । ଆଜ ଯାଉଛୁ ପ୍ରଥମ ପ୍ରେମପତ୍ର ତା' ଠାକୁ ଲେଖିବି । ପତ୍ରଟା ହେବ କବିତାରେ । ଛବିବାଲା ଛଠି କାଗଜ ଖଣ୍ଡେ, ଯଉଁଥିରେ ଥିବ "ଯାଓ ପାଖି ବଲ୍‌ନା ତାରେ ସେ ଯେନ ଭୁଲେନା ମୋରେ ।" ମୋଉଡ ଇଏ ବାଜେ ପ୍ରେମ ନୁହେଁ । ଖାଣ୍ଟିପ୍ରେମ—ନିସ୍ୱାର୍ଥ ପ୍ରେମ—ଦାର୍ଶନିକ ପ୍ରେମ; ପ୍ରେମ, ପ୍ରେମ, ବଣପ୍ରେମ !

[ ଗୀତ ]

ଯେ କରେ ଅର୍ପଣ ପ୍ରେମ ତା ମଜା ସେ ଜାଣେ ସିନା ।
ଅନ କେ ବୁଝିବ ତାର ଭାବ ସଚ୍ଚା ପ୍ରେମିକ ବିନା ॥

ପ୍ରେମେ ନାହିଁ ପର ଅପଣା ପ୍ରେମେ ନାହିଁ ବୁଝା ମଣା,
ପ୍ରେମ ଜାଣେ ପାଗଲକର ବିନା ମୂଲେ ବିକା କିଣା । ୧ ।

ପ୍ରେମେ ନାହିଁ ହାର ଫେରାଦ ପ୍ରେମେ ନାହିଁ ବାଧା ବିବାଧା,
ପ୍ରେମ ଭୂଇଁର ଖଜଣା ନାହିଁ, ଦଖଲ କରେ ନିସ୍ୱର ମିଛା ।୨।

ଗଣ୍ଡି ଗଣ୍ଡି ଅ ପ୍ରେମ ସ୍ୱଭାବ, ପ୍ରେମେ ନାହିଁ ଲାଭ ଅଲାଭ,
ଅଖି ଅଖି କଥା ବାରତା; ପ୍ରାଣେ ପ୍ରାଣେ ହୁଅଇ ଚିହ୍ନା । ୩ ।

ଯେ କରଇ ପ୍ରେମ ସାଧନା— ନାହିଁ ତାର କିଛି ଭାବନା,
ପ୍ରେମେ ଗାଏ ପ୍ରେମେ ନାଚେ ଠିକ ଧିନା ଧିନ୍ ଧିନକ ଧିନା ॥



## ତୃତୀୟ ଦୃଶ୍ୟ ।

[ ମାଷ୍ଟର ପାଠ ପଢ଼ାଇବା ପରେ ଏକାକୀ ]

ମାଷ୍ଟର—ଉଃ, ଦିନକାଳ ଆସି ହେଲା କଣ ! ଜୀବନଟା ଯାକ ପଢ଼ାଘଷା, ପାଠ ଘୋଷି ଘୋଷି ହାଡ଼ ମାଂସ ରହିଲା, ପାଣି ହେବା ଚନ୍ତ୍ରାଟରେ ବୋଳି ପଲାଏ ଲେଖାଏଁ ଲଙ୍କା ଶୁଖିଲା । ଶେଷରେ ତାର ପୁରସ୍କାର—ଏହି ଖଣ୍ଡିଏ ମାଷ୍ଟର ଚାକର ! ସେ ପୁଣି କେତେଦିନ ! ଏହାପରେ ସ୍ତ୍ରୀ ଦୁଆର ତା ଦୁଆର ହୋଇ ହୋଇ ବାକି କେତୋଟା ଦିନ କଟିଯିବ । କପାଳରେ ଯାହା ଅଛି ତାହା ଭୋଗିବାକୁ ହେବ । ଚାକରିର ବଜାର ପୁଣି ଏତେ ମହଙ୍ଗା । ସେଥିରେ ପୁଣି ଘୁଷ ଦେଇ ଉମେଦ୍‌ଓ୍ୟାରି କରିବାକୁ ବା ସଙ୍ଗତି କାହିଁ ? ହାକିମ ପାଦରେ ତୈଳ ମର୍ଦ୍ଦନ କରିବା ନିମନ୍ତେ ଯେତକ ତୈଳ ପ୍ରୟୋଜନ ସେତକ କିଣିବାକୁ ତ ଅଣ୍ଟାରେ କଉଡ଼ି ନାହିଁ; କରିବା କ'ଣ । ସ୍ୱାଧୀନ ବ୍ୟବସାୟ ? ରାମ, ରାମ, ସେତ ବନ୍ଧୁତ ପଇସାର କାମ । ଯାଃ—କିଛି କୁଆଡ଼ୁ ହେବନାହିଁ । ପେଟେ ବିକଳ ହୋଇ ଏହିଠି ପଡ଼ିଥାଏଁ, ଯାହା ବରାତରେ ଥିବ ।

( ମାଧବା ଓ ମଦନ କଳି ଲାଗି ଲାଗି ଖଣ୍ଡିଏ କାଗଜ ଛଡ଼ାଛଡ଼ି ହେଉଁ ହେଉଁ ଆସି ପହଞ୍ଚିଲେ । )

ମାଷ୍ଟର—ଏଇଟ୍ୟୋ, ଏଇଟ୍ୟୋ, ଚୁପକର ।
ଏ—ମାଧବା, ଏ—ମଦନ ! ଅଁ—କଥା ମାନୁ ନାହିଁ ?
ମୋ ସାମନାରେ ବଦମାସି ! ଗେଟ୍, ଗୋଟ୍—
Disobedient rascals !

( ଉଭୟଙ୍କୁ ଧରି ଛଡ଼ାଇଦେଇ )

କଣ, କଣ, ମାଧବା, ମଦନ କାହିଁକି କଳି ଲାଗିଥିଲ ? ଆଜି ଦୁହିଙ୍କୁ କୋଡ଼ିଏ କୋଡିଏ ବେତ ମାରିବି । ଖାତିରଙ୍କ ନଦାରଦ ! ଅରେ !

ମଦନ – ମାଷ୍ଟରେ, ସେ କାଗଜ ମୁଁ ନେବ, କି ସୁନ୍ଦର ଛବ ଅଛ ।

ମାଧବୀ—(କାନ୍ଦ କାନ୍ଦ) କାହ୍ନ କି ମାଷ୍ଟ୍ରେ, ସେ କାହିଁକି ମୋ ଛବ ନେବ ? ସିଏତ ମୋର । ମୋତେ ମାଧଭାଇ ଦେଇଛ ।

ମାଷ୍ଟର—କିଏ ଦେଇଛ, ମାଧ ? ଆମ ଏଇ ମାଧ ? ଦେଖେଁ ଦେଖେଁ କିମିତକା ଛବ । କାହାକୁ ଦେଇଛ ?

ମାଧବୀ – ମୋତେ ଦେଇଛ ମାଷ୍ଟ୍ରେ । ( ଛଠି ପ୍ରଦାନ )

ମାଷ୍ଟର—(କିଛିକ୍ଷଣ ନୀରବରେ ପଢ଼ିବା, ମୁଖ ଗମ୍ଭୀର କର ଓ ମୁଣ୍ଡରେ ହାତଦେଇ ବସି ପଡ଼ିବା) ଓଃ, କି ଭୟାନକ ଯୁଗ ! କଣ ହେଲ ଆସି ! [ କିଛିକ୍ଷଣ ଭଦ୍ର ଉଠିବା ] ନା, ଏ ସାମାନ୍ୟ କଥା ନୁହେଁ । ଏକଥା ବାବୁଙ୍କ ପାଖରେ ପକେଇ-ବାକୁ ହେବ । Not a trifling thing. Not at all ! Not at all ! Very serious !

ଏ—ମଦନ, ତୁ ଯା ବାପାଙ୍କୁ କହିବୁ ମାଷ୍ଟେରେ ଡାକୁଛନ୍ତି । ଏହିକ୍ଷଣି ଏଠିକ ଟିକିଏ ଆସିବେ । ବୁଝିଲୁ, ଯା, ଜଲ୍‌ଦ ଯା ।

[ ମଦନର ପ୍ରସ୍ଥାନ ]

ମାଧବୀ —କି, ମୋତେ ମାଧଭାଇ ଦେଇଛ । ମିଛଠାରେ ମଦନ କଳି କରୁଛି । ମାଧଭାଇକୁ ପଚାର—

ମାଷ୍ଟର—Innocent girl ! ଅବା, ସରଳା ବାଳିକା । ବୁଝିଲ, ଏଥିପାଇଁ ସେ ମାଧବୀ ସାଙ୍ଗରେ—

( ବାବୁଙ୍କର ପ୍ରବେଶ )

ସୁଧାନାଥବାବୁ—କି ମାଷ୍ଟର ବାବୁ; କଥା କଣ ? ଡାକୁଥିଲ କାହିଁକି ? What is the matter with you ? You look much agitated !

ମାଝେଷ୍ଟ ପୁଣି କଛ ଦୁଷ୍ଟାମି କରୁଛି କ ? ଆଁ, ଆଁ ?

ମାଷ୍ଟର—କହବ କଣ ? ଦେଖନ୍ତୁ, ଏ ଚଠି ଖଣ୍ଡ ଦେଖନ୍ତୁ । ସବୁ
ବୁଝିପାରବେ ।

ବାବୁ—ଚଠି ? କି ଚଠି ? କାହାର ?

ମାଷ୍ଟର—ଦେଖନ୍ତୁ । [ ଚଠି ପ୍ରଦାନ ]

ବାବୁ—[ କିଛୁକ୍ଷଣ ମାରବରେ ପଢ଼ି ] ମୁଁ ଅଉ ପଢ଼ିପାରୁ ନାହିଁ ।
ତମେ ପଢ଼ ମାଷ୍ଟର, ମୁଁ ଶୁଣେ । [ ଚଠି ଦେବା ]

ମାଷ୍ଟର—(ଚଠି ଖଣ୍ଡ ପାଟକର ପଢ଼ିଲେ ।)

ମାଧବୀ ମାଧବୀ ମାଧବୀ ଫୁଲ,
ମଜଲା ମଜଲା ମଜଲା କୂଳ,
ଦେଖିଲେ ଦନରୁ ତୋତେ ଲୋ ସଖି,
ମୋ ମନ ତୋ'ଠାରେ ରହୁଛି ଲାଖି ।
ଦବସ ରଜନୀ ତୋ'କଥା ଭଳ,
ଫାଟୁଯାଏ ହୃଦ ନୁହେଁ ସମ୍ଭାଳ ।
ପଞ୍ଚଶ ମୋହର ଦେଉଛି ଦହ,
କୃପାକର ବାରେ କରୁଣା ବହ ।
ତୋତେ ନ ପାଇଲେ ସଂସାର ଛାର,
ତୋହ ବନୁ ମୋର ସବୁ ଅନ୍ଧାର ।
ତୋହ ନାମ ଜପି ତୋ ଗୁଣ ଗାଇ,
ନଶ୍ଚୟ ମରବ ଗରଳ ଖାଇ ।
ଏ ଦାସକୁ ସହୁ ଦୟା ନ କଲେ,
ପଢ଼ବନ୍ତ ଯାଇ ମୁହିଁ ଅନଳେ ।
ଅଥବା ଗୋ ପ୍ରିୟେ ତୋହର ପାଇଁ,
ଶରୀର ଛାଡ଼ିବ ସଲଲେ ଯାଇ ।
ଅଧିକ ଦେବ ବା କ ପରଚୟ,
ତୋ ଦୟା ନୋହିଲେ ମୃତ୍ୟୁ ନଶ୍ଚୟ ।

ତୋ ନାମ ମାଧବୀ ମୁହିଁ ମାଧବ,
ବଧୂ କରଛନ୍ତି ଜାୟା ଓ ଧବ ।
ଏହାପତ୍ର ପାଠେ ନ କର ଦ୍ୱେଷ,
ଉତ୍ତର ପ୍ରଦାନେ କରବ ତୋଷ ।
ପ୍ରେମାକାଂକ୍ଷୀ
ମାଧବ ।

[ ଚିଠି ପଢ଼ିବା ସମୟରେ ମଧ୍ୟେ ମଧ୍ୟେ ବାବୁ ଗୋଟିଏ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହନ୍ତି 'କି ବଦମାସ ! କି ପାଜି ' ଇତ୍ୟାଦି ]

ବାବୁ—ଅଚ୍ଛା, ମାଧବୀ, ଏଚିଠି ତୋତେ କେତେବେଳେ ମାଧ ଦେଲା ?

ମାଧବୀ—ସକାଳୁ ଦେଇଗଲା । ମୁଁ ଧରଥିଲି, ମଦନ ଦେଖି ଛଡ଼ାଇଛି କରୁଛି । ଏ ମୋର, ବାପା ।

ବାବୁ—ଆଉ କେବେ ତୋତେ କିଛି ଦେଇଥିଲା ?

ମାଧବୀ—ନା, ବାପା ।

ବାବୁ—କିଛି କହେ ?

ମାଧବୀ—ନାହିଁ ।

ମଦନ—ହିଁ, ବାପା, ମୁଁ ଦେଖିଛି ସେ ଅପା ଆଡ଼କୁ ଚାହିଁ ଆଖି ଠାରେ ।

ବାବୁ—ଚୁପ୍ ରହ ପାଜି; ମାଷ୍ଟରବାବୁ, ମୁଁ ଦେଖୁଛି ଏ ସବୁ ତମର ଦୋଷ । your nigligence.

ମାଷ୍ଟର—କାହିଁକି, ମାଧ କଣ ମୋ ହୁକୁମରେ ଆସିଛି ?

ବାବୁ—କିନ୍ତୁ ତୁମେତ ତା Character ବିଷୟରେ certify କରୁଥିଲ । ମୁଁ ମୂଳରୁ ସନ୍ଦେହ କରୁଛି । ବୟସ ଆସି ଏତେ ହେଲା, ଆମେ କଣ ମଣିଷ ଚିହ୍ନି ଜାଣି ନାହିଁ ?

ମାଷ୍ଟର—[ ସ୍ୱଗତଃ ] ବଡ଼ଲୋକଙ୍କର ତ କିଛି ଦୋଷ ନାହିଁ । ସବୁ ଗଡ଼ୁଅଛେ ନୂଆଁ ଟିଆଁରୁ ।

ବାବୁ—ଦେଖ ମାଷ୍ଟ୍ରେ; ମୁଁ ଏଥିର କିଛୁ ବଡ଼ step ନେବା ଉଚିତ ମନେ କରୁନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ କଥାଟା ତେତେ serious ହୋଇନାହିଁ । ତେବେ ଆମର careful ହେବା ଆବଶ୍ୟକ । ସେ ଟୋକାକୁ କହିଦଅ ସେ ଆଉ ଏଠାକୁ ଆସିବ ନାହିଁ । ତା ବାପ ପତ୍ରିରଲେ କହିଦେବ କି ତମର ଅସୁବିଧା ହେଲା । ବାପ୍ ଏଣ୍ଟକି । Let the matter go—

[ ପ୍ରସ୍ଥାନ ]

ମାଷ୍ଟର—( ସ୍ୱଗତଃ ) ତମ ବନ୍ଧୁପୁଅ ବୋଲି ତୁମେ ଆଣି ପୂରେଇଲ ଘରେ—ଶେଷରେ ଦୋଷ ହେଲା ମାଷ୍ଟରର ! କି ନ୍ୟାୟ ! ଦୋଷ ଦେବି କାହାର; ମୋହର କର୍ମ ଦୋଷ ।

[ ମାଧବ ପ୍ରବେଶ ]

ମାଷ୍ଟର—ମାଧ, ତମେ ଏଠିକି ବର୍ତ୍ତମାନ ଆସୁଛ କି ଆଗରୁ ଆସିଥିଲ ?

ମାଧ—କେବେ Sir ?

ମାଷ୍ଟର—ଆଜି ।

ମାଧ—[ ମୁଣ୍ଡ କୁଣ୍ଡାଇ ] ମନେ ହେଉ ନାହିଁ ।

ମାଷ୍ଟର—କ'ଣ ମନେ ହେଉନାହିଁ । ଏହି ଘଡ଼ିକର କଥା । ମିଥ୍ୟାବାଦୀ, Rascal !

ମାଧ—(ସ୍ୱଗତଃ) ପ୍ରେମିକର ମିଥ୍ୟା କହିବାଟା chivalrous ନୁହେଁ । coward ହେବା ପ୍ରେମଧର୍ମର କଳଙ୍କ—moral courage ଦେଖାଇବା ଦରକାର । ( ପ୍ରକାଶ୍ୟେ ) ହଁ Sir, ମୁଁ ଆସିଥିଲି ।

ମାଷ୍ଟର—ଏ ଚିଠି ତୁମେ ଲେଖିଛ ?

ମାଧ—ଆଜ୍ଞା ହଁ ।

ମାଷ୍ଟର—କାହାଠାକୁ ?

ମାଧ—ଚିଠିରୁ ତ ଜାଣି ପାରିଥିବେ ବୋଧହୁଏ ।

ମାଷ୍ଟର—ଜଣେ ଭଦ୍ରଲୋକର ଏପରି ଭାବରେ ମର୍ଯ୍ୟାଦା ନଷ୍ଟ କରିବା ଉଚିତ କି ?

ମାଧ—ମୋ ମତରେ ଉଚିତ । Love ପଦ ଥିଲା ତ ଖରାପ ନୁହେଁ; ବରଂ ସେଉଁଠା ଖୁବ Noble, honourable ।

ମାଷ୍ଟର—ତମ ସାଙ୍ଗରେ ମୁଁ ଆଉ ଯୁକ୍ତି କରିବି ନାହିଁ । ଦେଖ ମାଧ, ଏଥର ତମକୁ excuse କଲି । କିନ୍ତୁ advise ଦଉଛି ଏପରି କାର୍ଯ୍ୟ ଆଉ କେବେ କରିବ ନାହିଁ । ଏହି ବୟସରେ ଯଦି ଏପରି ହେବ ତ ବଡ଼ିଲେ କଣ କରିବ ? ତୁମେ ଯାଅ, ମୁଁ ତୁମକୁ ଅଉ ପଢ଼ାଇ ପାରିବି ନାହିଁ । ଅଜଠାରୁ ତୁମର ଏଠାକୁ ଅସିବା ବନ୍ଦ ।

ମାଧ—ପବିତ୍ର ପ୍ରେମପାଇଁ ଅନେକ କଠୋର ନିର୍ଯ୍ୟାତନ ସହ୍ୟ କରିବାକୁ ହୁଏ । ମୁଁ ମଧ ସେଥିପାଇଁ ପ୍ରସ୍ତୁତ ଅଛି । ବିଦାୟ ହେବେ Sir—( ପ୍ରସ୍ଥାନ )

ମାଷ୍ଟର—ମୋର ଦେହ ଅଜ ଭଲ ନାହିଁ । ଅଜ ଛୁଟି, ତମେ ଯାଅ । ଆଉ, ମାଧବ, ଖବରଦାର, ମାଧ ସାଙ୍ଗରେ ଯେପରି କେବେ କଥା କହିବୁ ନାହିଁ, ବୁଝିଲୁ ।

ମଦନ—ମାଷ୍ଟରେ, ମୁଁ ଦେଖିଲେ ଅପଣାଙ୍କ ପାଖରେ କହିଦେବି । (ମାଷ୍ଟର ନର୍ଗତ ହେଲେ) ଅପା, ଅଜ ଛୁଟି, ଗୁଲି ଖେଳିବା । ମତେ ଯଦି ଛବି ଦଉଚ ମୁଁ ମାଷ୍ଟରଙ୍କ ଠେଇଁ ମାଧ କଥା ଆଉ କହିବ ନାହିଁ ।

( ମାଧବ ଖୁନ୍ଦାଏ ମାରି ପଳାଇଲେ ଓ ମଦନ କାନ୍ଦି କାନ୍ଦି ପଛେ ପଛେ ଗଲା )

ମଦନ—ଅପା ମତେ ମାଇଲା—ଏଁ, ଏଁ—ମାଷ୍ଟରେ—ଏଁ, ଏଁ—

---

## ୪ର୍ଥ ଦୃଶ୍ୟ ।

[ ମାଧ ଏକାକୀ ]

ମାଧ—ମହତ୍ କାର୍ଯ୍ୟ କରିବାକୁ ଗଲେ, ପଦେ ପଦେ ବାଧା ବିଘ୍ନ । କିନ୍ତୁ ଯାହାର ହୃଦୟ ଦୃଢ ସେଥିରେ ଦମିଯାଏ ନାହିଁ; ବରଂ ବାଧା ପାଇଲେ ସ୍ରୋତସ୍ୱତୀ ପରି ଦ୍ୱିଗୁଣ ତେଜରେ, ଦ୍ୱିଗୁଣ ଉତ୍ସାହରେ ଅଗ୍ରସର ହୁଏ । ଆଜି ମାଷ୍ଟରଙ୍କ ମୋର ପ୍ରେମ-ପଥର ଏକମାତ୍ର କଣ୍ଟକ । ଏ କଣ୍ଟକ ଉତ୍ପାଟନ କରିବାକୁ ହେବ କମ୍ବା dam care କରି ନିଜକାର୍ଯ୍ୟ ସାଧନ କରିବାକୁ ହେବ । କଥାରେ ଅଛି "ଇସ୍ପାତ ବରଂ ଭାଙ୍ଗିଯାଏ ତଥାପି ନଇଁ ଯାଏ ନାହିଁ । ବୀର ବରଂ ସମ୍ମୁଖ ସମରରେ ମରଣକୁ ବରଣ କରେ ତଥାପି ପୃଷ୍ଠପ୍ରଦର୍ଶନ କରେ ନାହିଁ । ବର୍ତ୍ତମାନ ସେହି ସମୟ ଉପସ୍ଥିତ । ଆଜି ଏକ ଚାଲ୍—ବଡ଼ ବିଷମ ଚାଲ ! ଏହି ଚାଲରେ କିସ୍ତି ମାତ୍ ! ଯେ କୌଣସି ଉପାୟରେ ମାଟ୍ରଙ୍କ ଠାକୁ ଅଗ୍ରିମ ଏ ପତ୍ର ଦେବାକୁ ହେବ । ସେଥିରେ ବ୍ରହ୍ମାସ୍ତ୍ରର ଅମୋଘ ମନ୍ତ୍ର ପ୍ରୟୋଗ ହେବ । ଏହି ସେହି ପତ୍ର । [ପତ୍ର ଦେଖାଇବା] ଏ ପତ୍ର ପଢ଼ିଲେ ସାମାନ୍ୟ ବାଳିକାଟା ଏ କିପରି ନ ଭୁଲି ରହିବ ! ତାର ବାବା ବି ଭୁଲିଯିବ ! ଯାଏଁ—

( ଗୀତ )

ଧରଛି ମୋତେ ପୀରତି ବାଇ ।
ହାଲୁ ହାଲୁ ହେଉଛି ପେଟ, ଘଡ଼କି ଘଡ଼ ଉଠୁଛି ହାଇ । ଘୋ ।
ପ୍ରୀତି ଲାଗି ଜଲେ ପଶିବି, ପ୍ରୀତି ଲାଗି ନିଆଁ ଗ୍ରାସିବି,
ପ୍ରୀତି ଲାଗି ଜାତି ନାଶିବି Grand Hotelରେ ଖାନା ଖାଇ ।୧।
ପ୍ରୀତି ପାଇଁ ଛାଡ଼ିବି ଘର ଆପଣାଙ୍କୁ କରିବି ପର,
ଚଢ଼ା କାଟି ଝଡ଼ଣେ ଧର, ପୀରତି ନାମ ବୁଲିବି ଗାଇ । ୨ ।

ପ୍ରୀତ ଧର୍ମ, ପ୍ରୀତହିଁ ସ୍ୱର୍ଗ, ପୀରତରେ ଚତୁର୍ବର୍ଗ,
ଯେ ନ କରେ ପୀରତ ସେବା, ତା life ରେ କଛି value ନାହିଁ ।୩।
ଯେ କରିବ ପୀରତ ନନ୍ଦା, କରିଦେବ ଘଡ଼କେ ଥଣ୍ଡା,
Newspaper Editor ହୋଇ, ସିଧା ସିଧା ତାଙ୍କୁ ଦେବି ମୁଁ ବାନ୍ଧି ॥
ଶେଷକୁ ମୁଁ ପାଣ୍ଟିବି ଫନ୍ଦା, ପ୍ରୀତନାମେ ଉଠାଇ ଚନ୍ଦା,
ଯେତେ ଲେଖାଏଁ ପଲ୍ଲୀରୁ ଆଉ ଲମ୍ବଖମ୍ବ ହୋଇ ପଡ଼ବ ଶୋଇ ।୪।

[ ପ୍ରସ୍ଥାନ ]

## ୫ମ ଦୃଶ୍ୟ ।

( ସୁଧାନିଧି ବୃଦ୍ଧଙ୍କ ଦାଣ୍ଡଘର )

ମାଷ୍ଟର—ଦେଖତ ଭଲା ! ଏତେ ଖଣ୍ଡେ ପିଲା, ଯ୍ୟୁର ସାହସ ! ଓଃ ! କାଳ ଇମିତ ହେଲା ! ଆଜ କାଲିକା ଶିକ୍ଷାର ଫଳ ! ଯୁଗର ଦସ୍ତୁର । କେତେ ଛୋଟ ଏ ମୁହଁରେ କଥା କହୁଛି କେତେ କେତେ ! ଏତକ୍ଷଣ ଧରା ପଡ଼ ନଥିଲେ ଶେଷରେ ମୋହର ବଦନାମ ହୋଇଥାନ୍ତା ! ନ ହୋଇଛି ବା କଣ ! ଯାହା ହେଉ, ଆଉ ତାକୁ ଏଠି ପାଦ ପକାଇବାକୁ ଦେବି-ନାହିଁ । ଖୁବ ଜବଦ ହୋଇଛି ।

[ ମଦନ ଧାଇଁ ଧାଇଁ ଆସିଲା ]

ମଦନ— ମାଷ୍ଟ୍ରେ, ମାଷ୍ଟ୍ରେ, ମାଧଭାଇ ପୁଣି ଏହିକ୍ଷଣି ଏହି ଚିଠି ଦେଇ-ଗଲା । କହୁଛି ଅପାକୁ ଦବା ଲାଗି । ମୋତେ କହୁଛି ଭଲ ପାଣିଛୁପା ଆଣି ଦବ ।

ମାଷ୍ଟର —ଆଁ, ଆଁ ! ମଦନ ! ପୁଣି ଚିଠି ? ଦେଖେଁ ଦେଖେଁ ?

( ଚିଠି ନେଇ ମନେ ମନେ ପଢ଼ିବାକୁ ଲାଗିଲେ )

ମଦନ—ମାଷ୍ଟରେ, କହିଥିଲ ଟି ଆଉ କାହାରିକୁ ପଢ଼ିବାକୁ ଦବୁନାହିଁ । ଲୁଚେଇ କରି ସାନ ଅପାକୁ—

ମାଷ୍ଟର—ମଦନ, ଯା ତୋ ବାପାଙ୍କୁ କହିବୁ, ମାଷ୍ଟର ଡାକୁଛନ୍ତି ।

[ ମଦନ ନର୍ଗତ ]

ଓଃ, କି ଭୟାନକ ଜାନୁଆର ! କି ମାରାତ୍ମକ ମତଲବ !
ଏ ଭଲଆ ସମ୍ବୃଦ୍ଧାନ କଣ ଦୁନଆରେ ଅଛନ୍ତି ! ମୋର ତ ଅକ୍କଲ
ଗୁଡ଼ୁମ ! ଅସନ୍ତୁ ବାବୁ, ଶୁଣନ୍ତୁ ତାଙ୍କ ବନ୍ଧୁପୁତ୍ରଙ୍କ ଗୁଣ ।

[ ସୁଧାନିଧି ବାବୁ ପ୍ରବିଷ୍ଟ ହେଲେ ]

ସୁଧା—କହେ ମାଷ୍ଟର ବାବୁ, କାହିଁକି ଡାକିଲ କି ?

ମାଷ୍ଟର—କହିବ କଣ, କହିବାର କଥା ନୁହେ ।

ସୁଧା—(ହସି)କହିବାର କଥା ନୁହେ ତ ଡକାଇବାର ପ୍ରୟୋଜନ କଣ, ନ କହିଲେ ବା ଜାଣିବି କପର ! ଏମନ୍ତ mysterious କଥା କଣ କି ?

ମାଷ୍ଟର—ଅଚ୍ଛା, ଦେଖନ୍ତୁ—ଏହି ଚିଠିରୁ ସବୁ ଜାଣି ପାରିବେ ।

[ ଚିଠି ଦେଲେ ]

ସୁଧା—ପୁଣି କି ଚିଠି ହେ ? (ପଢ଼ିଲେ) [ କ୍ରୋଧାନ୍ୱିତ ହୋଇ ]
Scoundrel, scoundrel ! କପର ଏ ଚିଠି ଦେଲା ହେ ?

ମାଷ୍ଟର—ମଦନ ହାତରେ ଦେଇ ପଠାଇଛି ।

ସୁଧା—ସମ୍ବୃଦ୍ଧାନ, Venomous serpant ! ଦେଖିଲି ତୁମନ୍କ negligence ସବୁ । Discipline ଜ୍ଞାନ ତମର ଅଦୌ ନାହିଁ । ପିଲାଙ୍କୁ କପର ଶାସନ କରିବାକୁ ହୁଏ କପର ତାଙ୍କର Character mould କରିବାକୁ ହୁଏ ସେ ସବୁ କିଛୁ ତୁମକୁ ମାଲୁମ ନାହିଁ । Inexperienced young man.

ମାଷ୍ଟର—ଅଚ୍ଛା, ମୋର ସବୁ ଦୋଷ, ମୁଁ ସ୍ୱୀକାର କରୁଛି । କିନ୍ତୁ କେବଳ ମୋ ଉପରେ ରାଗ ଝାଡ଼ିଦେଲେ ତ ହେବ ନାହିଁ— ଏଥିର ପ୍ରତିକାର କଣ ?

ସୁଧା—ମୁଁ ଇଚ୍ଛା କଲେ ତାକୁ ବର୍ତ୍ତମାନ ଜେଲ ଦିଅନ୍ତି କମ୍ବା ୫୦ ବେତ Whipping ସଜା କରିଦିଅନ୍ତି । ଆଉ—ସାବଧାନ, ସେ ଟୋକା ମୋ ଘର ଭିତରେ ପୁଣି ଗୋଡ଼ଦେଲେ ମେହେନ୍ତର ହାତରେ ଧକ୍କା ମାରି ବାହାର କରିଦେବ ।

ମାଷ୍ଟର—ପୁଣି ଆସିଲେ ତ ତାହା କରାଯିବ—ବର୍ତ୍ତମାନ ?

ସୁଧା—ବର୍ତ୍ତମାନ—ଜୋତା ! ଏ ଚିଠି ନେଇ ତମେ ଯାଅ ତା ବାପକୁ ଦେଖାଇବ । ସେ କଣ କହୁଛନ୍ତି ଦେଖ—ତା ପରେ—ଯାଅ, ତମେ ଏହିକ୍ଷଣି ଯାଅ । Be quick—Immediately [ ପ୍ରସ୍ଥାନ ]

ମାଷ୍ଟର—ମୋର ଏଥିରେ ଯେ କେଉଁ ସ୍ଥାନରେ ଦୋଷଟା ରହିଲା ମୁଁ ତ ତାହା ବୁଝି ପାରୁନାହିଁ । ଯାହାହେଉ, ଭଲ Certificate ଟା ଅଜି ମିଳଇ ଏକା । ପରଘରେ ମୁଣ୍ଡ ଗଞ୍ଜିଲେ ଏହିପରି କେତେ କଣ ସହିବାକୁ ହୁଏ । ଆହା, କେଡ଼େ ଖୋସ ଖବରଟାଏ ନେଇଯିବ ଜଣେ ଭଦ୍ରଲୋକ ଘରକୁ । ନିଜ ସରମ ବ ପୋଡ଼ି ଖାଇଲି । କ unpleasant, ଛି, ଛି,—ଅଜଠାରୁ ମୋର ଏଭଳ ବାବା— [ ପ୍ରସ୍ଥାନ ]



## ୬ଷ୍ଠ ଦୃଶ୍ୟ ।

[ ମଧୁ ଏକାକୀ ]

ମଧୁ—ଅଜ ଯାହା ହେବାର ଶେଷ । ସେହି Old fool ମାଷ୍ଟର ଅଜ ଦେଖିବ କାହାର ବୁଦ୍ଧି ଜୋର ବେଶୀ । ଚୁମ୍ବକ ଚିରକାଳ ଲୁହାକୁ ଅକର୍ଷଣ କରେ । ମାଷ୍ଟରଟାର କ ସାଧ୍ୟ ଏହି Natural

Law ର ବ୍ୟତିକ୍ରମ କରିବ । ସାମାନ୍ୟ ସମାଜଶାସନ କଣ ନୈସର୍ଗିକ free love ର ଅପ୍ରତିହତ ଗତିରୋଧକରି ପାରିବ ! କଦାପି ନୁହେ । ମଦନ ହାତରେ ମୋର ଶେଷପତ୍ର ମାଧବୀଠାକୁ ପ୍ରେରଣ କରିଛି । ସେଥିରେ ଲେଖିଛି ସେ ତାଙ୍କ ବାରି ପଛ ପୋଖରି କୂଳରେ ମୋ ସଙ୍ଗରେ meet କରିବା ପାଇଁ ଅପେକ୍ଷା କରିବ । ଅହା ପ୍ରେମମୟୀ ମୋର କି ବ୍ୟାକୁଳ ପ୍ରତୀକ୍ଷାରେ ଏକାଙ୍କିନୀ କାଳ କଟାଉଥିବ । ସମୟ ଆଗତ ପ୍ରାୟ । ଯାଏ ଭଲ style ରେ dress ଟା ହୋଇ ଆସେଁ ।

ଅଜି ଜଗତରେ ମୁକ୍ତ ପ୍ରଣୟର ବିଜୟ ପତାକା ଉଡ଼ିବ—ଅଥବା ଗୋଟିଏ ନିରାଶ ପ୍ରେମ ସାଧକର ଅନନ୍ତ ସମାଧି ବକ୍ଷରେ ଧାରଣ କରି ଧରିତ୍ରୀ ଧନ୍ୟା ହେବ । ଏ ହୃଦୟ ସିଂହାସନରେ ତାଙ୍କୁ ରାଣୀକରି ବସାଇବି କିମ୍ବା ସେହି ଅସାଧ ଦେବତାର ଚରଣ ତଳରେ ହୃଦୟର ସମସ୍ତଆଶା ଆକାଙ୍କ୍ଷାର ଚନ୍ଦାଭସ୍ମ ଅର୍ଘ୍ୟ ଦାନକରି ମାନବ ଜୀବନ ସାର୍ଥକ କରିବି । ଜୟ ପ୍ରେମର ଜୟ, ଜୟ ପ୍ରେମର ଜୟ!

---

## ୭ମ ଦୃଶ୍ୟ ।

( କରୁଣି ବାବୁଙ୍କ ବୈଠକଖାନା )

କରୁଣି ବାବୁ ଓ ମାଷ୍ଟର ।

କରୁଣି—ମାଷ୍ଟର ବାବୁ, ସୁଧାନିଧି ବାବୁ ମୋର ଜଣେ ବଶିଷ୍ଟ ବନ୍ଧୁ, ପିଲାବେଳର Class mate ଆଉ ସ୍ୱଜାତି । ଶୁଣିଲି ଆପଣ ମାଧବୀକୁ ବାରଣ କରିଛନ୍ତି ସେଠାକୁ ଯିବାପାଇଁ । ଏହାର କାରଣ କଣ ?

ମାଷ୍ଟର—ଯେ କୌଣସି ଭଦ୍ର ଲୋକର ଘରକୁ ଯିବାପାଇଁ ସେପରି ପିଲାକୁ ବାରଣ କରିବା ଉଚିତ ।

କରୁଣି—ଆପଣଙ୍କର ଉଦ୍ଦେଶ୍ୟ କଣ ମୁଁ ବୁଝି ପାରୁନାହିଁ । ଆପଣ କଣ ମୋତେ Insult କରିବାକୁ ଆସିଛନ୍ତି ।

ମାଷ୍ଟର—ଆଜ୍ଞା ନାହିଁ; ମାଧବ ଙ୍କର ଚାହାଣି ସମସ୍ତ ଯଦି ଶୁଣିବେ ତେବେ ଆପଣ ନିଜେ ବୋଧହୁଏ ଆପଣଙ୍କ ଘରୁ ବାହାର କରି ଦେବେ ।

କରୁଣି—କଣ, କଣ, ସେପରି କାରଣ କଣ ?

ମାଷ୍ଟର—ଏହି ଦେଖନ୍ତୁ—ଏଥିରୁ ସବୁ ବୁଝି ପାରିବେ ।

( ପତ୍ର ପ୍ରଦାନ କଲେ )

କରୁଣି—( ବକ୍ଷସ୍ଥଳ ପଢ଼ି ) ଆଁ, କୁଳଚନ୍ଦ୍ରମା ଗଲେ କୁଆଡ଼େ ! ମାଧ, ମାଧ !

ମାଷ୍ଟର—ରହନ୍ତୁ । ଆହୁରି ଅଛି । ଏ ପତ୍ରଖଣ୍ଡିକ ମୁଁ ଦେଖି ମାଧଙ୍କୁ Warn କରି ଦେଲି ଆଉ କହିଦେଲି କି ସୁଧାନିଧି ବାବୁଙ୍କ ଘରକୁ ଆଉ ଆସିବ ନାହିଁ । ତାହାପରେ ପୁଣି ସେ କି ଚିଠି ଲେଖିଛି ଦେଖନ୍ତୁ ।

କରୁଣି—ଏହା ପରେ ପୁଣି ଚିଠି !

ମାଷ୍ଟର—ଆଜ୍ଞା; ଭଲକରି ଦେଖନ୍ତୁ ଆପଣଙ୍କ ଗୁଣଧରଙ୍କ ଗୁଣ ।

( ପତ୍ର ପ୍ରଦାନ )

କରୁଣି—ମାଷ୍ଟରବାବୁ, ଅନୁଗ୍ରହ କରି ଆପଣ ପଢ଼ି ଯାଆନ୍ତୁ; ମୁଁ ଶୁଣୁଛି । ମୋ ମୁଣ୍ଡ ବୁଲାଉଛି—

ମାଷ୍ଟର—ଶୁଣନ୍ତୁ ତେବେ— ( ପତ୍ର ପାଠକଲେ )

କେତେ ଯତନରେ ହୃଦୟ ମରୁରେ ବଢ଼ାଇଲି ଆଶା ଲତା,
ଫୁଲ ନ ଫୁଟୁଣୁ କଢ଼ି ନ ଧରୁଣୁ କାଟିଲା ତାହା ବିଧାତା ।
କେ କିସ କରିବ ନିଷ୍ଠୁର ମାଷ୍ଟର ହୋଇଲା ଆସି ଭଗାର,
ତୁମ୍ଭ ପିତା ପୁଣି କିଛି ନ ବୁଝିଣ ଶୁଣିଲେ କଥା ତାହାର ।

ଅପ୍ରେମିକ ଗୁଡ଼ା ପ୍ରେମର ମାହାତ୍ମ୍ୟ ବୁଝିବେ କିପରି ସନ୍ଧି,
ଅବା କି ଜାଣନ୍ତି ପ୍ରେମିକର ପ୍ରାଣ କିପରି ହୁଅଇ ଦଗ୍ଧ ?
କେଦାରଗଉରୀ କଥା ଭାଷା ହେଲେ କାନ୍ଦକଣା କରି ଦିନା,
ଆମେ ଦୁଇଜଣ କରନ୍ତେ ବା ତାହା, କି କରିବା କାନ୍ଦ ବିନା ?
ଭୃଙ୍ଗ ଅବା ସଖି ଯାଇଁ ପାରନ୍ତି କି ଶୁଅଟି ପାରନ୍ତି ମୁହିଁ;
ହୋଇ ପାରନ୍ତେ ବା ତାଙ୍କର ଦ୍ୱାରରେ କଥାବାର୍ତ୍ତା କୁହାକୁହି
ଆମର ଗ୍ରାମରେ ରାଜହଂସ ବେନି କାହାର ଅବା ଥାଅନ୍ତେ,
ସେ ଯାହା ପାଖକୁ ଚିଠିପତ୍ର ନେଇ ଉଡ଼ିଣ ଅବା ଯାଆନ୍ତେ ।
କୋକିଳଙ୍କୁ ଭଲ ବହୁ ଅଶାଥିଲି ସେ ବଡ଼ ଦାରୁଣ ପକ୍ଷୀ,
ପ୍ରିୟପ୍ରିୟାଙ୍କର ମିଳନରୁ ସିଏ ଅନ୍ତରରେ ହୋନ୍ତି ଦୁଃଖୀ ।
କପୋତଗୁଡ଼ା ଯଦି ବୋଲ ମାନୁଥାନ୍ତେ ସେ ଅବା କରନ୍ତେ କାମ,
କଳିକାଳେ ସବୁ ଓଲଟା ହେଲାଣି ବିଧି ଅନ୍ତପ୍ରଭୁ ବାମ ।
ପବନର ଯଦି ଜୀବନ ଥାଆନ୍ତା ସେ ଅବା ହୁଅନ୍ତେ ଦୂତ,
ଏ ଯୁଗେ ଦେବତା ନିର୍ଦ୍ଦୟ ହେଲେଣି ସବୁ କଥା ଅଦ୍ଭୁତ ।
ବିଚ୍ଛିନ୍ନ କରଣ ତନରୁ ତନୁକୁ ହୃଦୟୁଁ ହୃଦୟ ରଖି ।
ନିର୍ବୋଧ, ଅବୁଝା ମୂଢବୁଦ୍ଧି ଗୁଡ଼ାକ କି ଫଳ ପାଇବେ ସଖି ?
ଯାହାର ହେଲାଣି ସବୁ ସରଲାଣି ଏ ଜୀବନେ ଆଶା ନାହିଁ
କାଲଠା ସରାଣି କେବଳ ରଖିଛି ତୋହର ସାକ୍ଷାତ ପାଇଁ ।
ଶେଷ ଦେଖାକର ଜାଣିବୁଟି ସଖି ମରିବି ମୁହିଁ ନିଶ୍ଚୟ,
ମରିବା ବାଟଟା କହି ଦେବୁ ମୋତେ ନ କରଣ କିଛି ଭୟ ।
ଜଳେ ପଶିବି କି ଅନଳେ ଝାସିବି ଅଥବା ଖାଇବି ବିଷ,
ଗୁଳି ମାରିବି କି ଛୁରୀ ଲଗାଇବି କହିବୁ କରିବି କିସ ।
ଦଉଡ଼ି ଦେଇ କି ଲଟକିବି ସମ୍ମୁଖେ ଅବା ପଶିବି ବନେ,
ରେଳ ପାଟିରେ ମୁଣ୍ଡ ଥୋଇବି କି ପାଶ୍ଚ ରଖିଅବୁ ମନେ ।
ବାବାଜି ହୋଇଲେ ଭଲ ହେବଟି କି ବୁଲିବି ଦେଶ ବିଦେଶେ,
ତୋହ ନାମ ଜପି ଆର ଜନମରେ ତୋତେ ପାଇବାର ଆଶେ ।

ଏହି ଜନ୍ମମଠା ବୃଥା ଗୃଲଗଲା ଏକା କୋ ଚୋଦ୍ଦର ପାଇଁ,
ଏହି କଥାଜାଣି ସାକ୍ଷାତ ଦେବାକୁ ମନା ତୁ କରନ୍ତୁ ନାହିଁ।
ବାଡ଼ ପଚ୍ଛଆଡ଼ି ଆମ୍ବ ବଗିଚ୍ଚ ର ଅଥବା ପୋଖରୀ କୂଳେ,
ମରିବା ଅଗରୁ ଶେଷଦେଖା ଥରେ ଦେଇଯିବ ସନ୍ଧ୍ୟାକାଳେ।
ଅତି ଗୋପନରେ ପଢ଼ିବ ଏ ଚିଠି ରଖିଥିବ ସାବଧାନେ,
ମାଷ୍ଟର ଦୁଷ୍ଟଙ୍କୁ ବିଶ୍ୱାସ ନାହିଁଟି ଯେପରି କେହି ନ ଜାଣେ।

"ମାଧି"

କରୁଣ—ସରଳନା ଏବେ ?

ମାଷ୍ଟର—ଆଜ୍ଞା, ଏଇକ୍ଷ।

କରୁଣ—ଅଚ୍ଛା ମୁଁ ତା ପ୍ରେମବାଣ ଛଡ଼େଇ ଦଉଛି ଏହିକ୍ଷଣି। ରେ ମାଧି, ମାଧି, ଅରେ ମାଧି।

[ ଭିତରୁ 'ଆଜ୍ଞା' ]

ମାଷ୍ଟର ବାବୁ ମୋର ଦୁଃଖ ହଉଛି ଆପଣ ଯା ଏଯାକେ ଆସିଲେ। କେଉଁଠି ଧର ଉତ୍ତମ ମଧ୍ୟମ ଥଚ୍ଚାକର ଚଡ଼େଇ ପାରିଲେ ନାହିଁ।

[ ମାଧି ପ୍ରବିଷ୍ଟ ହେଲା ]

କରୁଣ—କିରେ ଅଜଡ ବଡ଼ ବେଶ ଭୂଷଣହୋଇ ସାରିଲୁଣି; ଇଏ କଣ ଜୀବନ ଅନ୍ତଭଦେବା ସଜ ?

ମାଧ—କଣ କହୁଛନ୍ତି ମୁଁ ବୁଝି ପାରୁନାହିଁ ବାପା।

କରୁଣ—କହୁଛି କଣକ୍ଷ, ତୁ ପରା ମରିବାର ଉପାୟ ଖୋଜୁଛୁ—ସେଥିପାଇଁ ଡାକିଲିକ ଭଲ ବାଟଟିଏ କହିଦେବି।

ମାଧ—ଓହୋ ବୁଝିଲି। କିନ୍ତୁ ବାବା ଆପଣ କଥାଟାକୁ ଯେତେ lightly ନେଉଛନ୍ତି ତାହା ସେତେ light ନୁହେଁ। ଖବ ଗୁରୁତର, Serious.

କରୁଣି—ସତେ ! ଏତେ ବୁଦ୍ଧିହେଲା କନ୍ଦର୍ପ ଦନ୍ତରେ ତୋର ? ଦୁଧ-
ଗନ୍ଧ ଗୁଚିଲା କେବେ ?

ମାଧ—ବୟସ ସନ୍ଧିତରେ ହୃଦୟର ପକ୍ଷର୍କ କଣ ? ମୋ ଅନ୍ତରେ ପ୍ରୀତି,
ଚଲସ୍ପୃ ।

କରୁଣି—ଅରେ ପାଜି ଏ ଚିଠି ତୁ ଲେଖିଛୁ ?

ମାଧ – ହଁ ଲେଖିଛୁ ।

କରୁଣି—କାହାଁକ ହେ କୁଳନନ୍ଦନ ?

ମାଧ—ମରିବା ପାଇଁ । This is a question of life and
death.

କରୁଣି—କାରଣଟା କଣ ?

ମାଧ—ସତ କହୁଛି ବାପା, ମାଧଖିଙ୍କୁ ନ ପାଇଲେ ମୋ ଜୀବନରେ
ସୁଖ ନାହିଁ କି ଶାନ୍ତି ନାହିଁ । ଏ ଜୀବନଟାପାଇ ଗୋଟାଏ
ବିକଟ ସାହାରା ମରୁଭୂମି ହୋଇଯିବ ।

କରୁଣି—ଚୁପ, ଚୁପ, ବଦଜାତ, ପାଜି । ମୋ ମୁହଁ ହତ୍ରପତରେ ପ୍ରେମ
କଥା । ନିଶା ଖାଇଛୁ ନା କଣ ? ଛଡ଼େଇ ଦଉଛି ତୋ
ନିଶା, ରହ । (ଏହା କହି ଗୋଡ଼ରୁ ଚଟିଜୋତା ଖୋଲି ପଟାପଟ
ବାଡ଼େଇବାକୁ ଲାଗିଲେ ।)

ମାଧ—( ପଳାଉଁ ପଳାଉଁ ) ଆଉ କରିବ ନାହିଁ, ଆଉ କରିବି ନାହିଁ
—ଆଉ ମରିବାକୁ ମନ କରିବ ନାହିଁ ।

କରୁଣି—( ବାଉଉଁ ବାଉଉଁ ) ମର୍, ମର୍, ପାଜି ।

( ମାଧ ପଳାଇଗଲା )

ମାଷ୍ଟର—ଥାଉ, ଥାଉ, ଖୁବ ହେଲାଣି ।

କରୁଣି—ବୁଝିଲେ ମାଷ୍ଟର ବାବୁ, ପ୍ରେମବାୟୁର ଏହି ଖାଣ୍ଟି ଔଷଧ ।
ଦେଖିବେ ଆଜିଠାରୁ ଠିକ ଫଳଖ ବାଟରେ ଗ୍ଲିବ । ମୁଁ
ପ୍ରଥମେ କଥାଟା ବୁଝି ନ ପାରି ଟିକିଏ କଡ଼ୁକଥା କହୁଥିଲି

ଆପଣଙ୍କୁ । କିନ୍ତୁ ମନେ କରିବେ ନାହିଁ । କଥାଟା ପ୍ରକାଶ କରିବେ ନାହିଁ ।

ମାଷ୍ଟର—କିନ୍ତୁ ଅପଣଙ୍କ ଏହି ଅମୋଘ ଔଷଧଟାତ ପ୍ରକାଶ କରିବା ଉଚିତ । ତାହାହେଲେ ଏହିପରି ବଟିଢ଼ି ଯାଉଥିବା ଲୋକ ଟାକଗୁଙ୍କର ବହୁତ ଉପକାର ହେବ । ମୋ ମତରେ ଏଉଟା ଖବର କାଗଜରେ advertisement ଦେବା ଭଲ ଜିନିଷ ଏକା । ଯାହାହେଉ ଏ ଭୁଟ୍‌କାଟି ଅପଣଙ୍କ ଠାରୁ ଶିଖିଲି । ଦଣ୍ଡବତ । ( ପ୍ରସ୍ଥାନ । )

କରୁଣି—ଆଜକାଲିକା ବଜାର ବହି ଗୁଡ଼ାକ ପଢ଼ି ଅଳ୍ପବୟସ୍କ ପିଲାଯାକ ସବୁ କପି ବେଳରୁ ପାଚିଯାଇ କୋଇଲିପଡ଼ା ଧରି ଯାଉଛନ୍ତି । ସେମାନଙ୍କ ଏ Education system ରେ କଣ ଅଛି କେଜାଣି ଶତକଡ଼ା ୨୨ per cent ଏହିପରି । ଶିକ୍ଷା ପ୍ରଣାଳୀର ଶୀଘ୍ର ପରିବର୍ତ୍ତନ ନ ହେଲେ ସମସ୍ତେ ଏହିପରି ହେବେ । ସମାଜ ଏକାବେଳକେ ଉଛନ୍ନ ହୋଇଯିବ ।

——୦——

## ୮ମ ଦୃଶ୍ୟ ।

( ମାଧ ପ୍ରବେଶ୍ଚ ହେଲା )

ମାଧ—ଇଲୋ ବାବା ! ପ୍ରେମ କରିବାରେ ପୁଣି ଏତେ ବିପଦ । ଏହା ଜାଣିଥିଲେ କିଏ ଅବା ଏଥିରେ ହାତ ଦେଇ ଥାଆନ୍ତା ! ଠିକ ଏ experiment କରୁଁ କରୁଁ ତ ଏଡ଼ିକ ! ଆଉ ହୋଇଥିଲେ କଣ ହେଇ ଥାଆନ୍ତା କେଜାଣି ! କାବ୍ୟ ଉପନ୍ୟାସ ଲେଖକ ଗୁଡ଼ାକ ଅବିଶ୍ୱାସୀ, ଠକ—ଶଠ୍ଠା କପଟି ଟୋଳି, ବୋକା, ବେହେଲ୍ଲୁବ । ତାଙ୍କ ହାତ କଲମରେ ଯେ

କେବେ ନକେ ପ୍ରେମ ପାଲରେ ପଡ଼ିନାହାନ୍ତି । କେବଳ ପତ୍ର ଉପରେ ଲଦିଦେଇ ଅସଙ୍ଗତ କଥାଗୁଡ଼ାକ ଲେଖି ମୋହିତ ପତ୍ର ସରଳପ୍ରାଣ ଲୋକଙ୍କୁ ମତେଇ ଦିଅନ୍ତି ଓ ମଜା ଦେଖନ୍ତି । ବାବା, ଭଲ ମଣିଷ ଏଥିରେ ଆଉ ଗୋଡ଼ ଦିଅନ୍ତି ନାହିଁ ।

ସବୁଥିଲ୍, ନାଟକୀୟ ଭାଷାରେ ଦି'ପଦ ଚିଠି ଲେଖିଦେଇ ଗୋଟାଏ ଉପିକଥା କହନେବ । ତା ମଜାଟା ଏବେ ଖୁବ ପାଇଲି ବାବା । ଜୁହାର ବାବା ଜୁହାର୍ ।—

( ଗୀତ )

ପ୍ରେମ ନିଶା ମୋର ଗଲା ଛାଡ଼ି,
ଝିଙ୍କ ମାରିଲା ଧୁଆଁ ଖାଇଲି ନାକଦସି କାନ ମୋଡ଼ି ମୋଡ଼ି । ଘୋଷା ।
ପ୍ରେମକର ଏଡ଼ିକ ଦରଗଞ୍ଜ ପ୍ରେମେ ଅନୁକୋଟି ଝଞ୍ଜ
ପ୍ରେମପରୀକ୍ଷା କରିବାକୁ ଯାଇ ମିଳିଗଲା ମଞ୍ଜ,
(ଆଉ) ପ୍ରେମର ନାମ ଶୁଣିଲାକ୍ଷଣି ଡର ମରୁଥିବ ହରିଘୋଡ଼ି । ୧ ।
ପ୍ରେମ ଦେଖିବାକୁ ଭଲ ଭିତରେ ମଇଲା ବଲ ବଲ
ପ୍ରେମର ଦାଉ ମାରିଦେଲା ମୋର ପିଠିର ଗଲଗଲ,
(କେବେ) ପ୍ରେମପାଲରେ ପଡ଼ ନାହିଁ ଭାଇ ଜୁହାର ଦେଉଛୁ
କରଯୋଡ଼ି । ୨ ।

( ଯବନିକା )

Printed by H. K. Das, Chandrodaya Press, Cuttack

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର, ବି. ଏ. ଙ୍କ କୃତ

କବିତା **କଲ୍ଲୋଳ** ପୁସ୍ତକ

ପାଟଣା ବିଶ୍ୱବିଦ୍ୟାଳୟର ମାଟ୍ରିକୁଲେସନ ପାଠ୍ୟରୂପେ ନିର୍ଦ୍ଧାରିତ ।

ଲଳିତ ଭାଷା, ମଧୁର ଭାବ, ନବୀନ କଳ୍ପନା ।

ମୂଲ୍ୟ ଟ ୦ । ଚାରିଅଣା ମାତ୍ର ।

---

ଆପଣଙ୍କ ଝିଅ, ବୋହୂ, ନାତୁଣୀଙ୍କ ହାତରେ

ଖଣ୍ଡିଏ **କୁମାରୀ** ଦିଅନ୍ତୁ ।

ସରଳ, ତରଳ, ମଧୁର ଗୀତିକାବ୍ୟ ।

ଟିକିଏ ଥରେ ପଢ଼ିଲେ ନ ଶେଷ ଛାଡ଼ିବେ ନାହିଁ ।

ମୂଲ୍ୟ ଟ ୦ ୶ ଛଅଣା ମାତ୍ର ।

---

# ପରୀକ୍ଷାର ଫଳ

ହାସ୍ୟୋଦ୍ଦୀପକ ଓ ଶିକ୍ଷାପ୍ରଦ ସାମାଜିକ ପ୍ରହସନ ।

ମୂଲ୍ୟ ଟ ୦ ୵୬ ଦଶ ପଇସା ମାତ୍ର ।

କଟକ, ଚନ୍ଦ୍ରୋଦୟ ପ୍ରେସ, ମୁକୁର ପୁସ୍ତକାଳୟ ଓ
କଟକ ଟ୍ରେଡିଂ କୋମ୍ପାନୀ ପ୍ରଭୃତିରେ ମିଳେ ।